ISSN: 2456-9194, Vol. I, Issue. III, 2017


# ପ୍ରତ୍ୟୟ

**(Journal of Odia Language, Culture and Science)**

Journal Homepage: http://cphfs.in/research.php




# କଥିତ ଓଡ଼ିଆ ଭାଷାର ପରିଚୟ


ସଂଘମିତ୍ରା ବେହେରା

ଆସିଷ୍ଟାଣ୍ଟ ପ୍ରଫେସର, ଓଡ଼ିଆ ବିଭାଗ

ରେଭେନ୍ସା ବିଶ୍ୱବିଦ୍ୟାଳୟ, କଟକ

E-mail: sanghamitraorissa@gmail.com



*ସଂକ୍ଷିପ୍ତ ପରିଚୟ - ଶକ୍ତି ଉପାସନା ଭାରତୀୟ ଐତିହ୍ୟ ସଂସ୍କୃତି ତଥା ପରମ୍ପରାରେ ଏକ ମହାନ ଚେତନା । ଭାରତରେ ମାତୃପୂଜା କୈନ୍ଦ୍ରିକ ପରଂପରା ଏକ ଅନନ୍ୟ ପରଂପରା । ଭାରତୀୟ ପରଂପରାରେ ନାରୀକୁ ଦିଆଯାଇଛି ଉଚ୍ଚାସନ । ଏଠାରେ ନାରୀ ଶକ୍ତିର ପ୍ରତୀକ । ଶକ୍ତି ଉପାସନା ମାଧ୍ୟମରେ ନାରୀଶକ୍ତି ମହତ୍ତ୍ୱକୁ ସମାଜରେ ପ୍ରତିଷ୍ଠିତ କରାଯାଇଛି । ନାରୀଶକ୍ତି ଭାରତୀୟ ପରମ୍ପରା ରେ ଦୈବୀଶକ୍ତିର ଦ୍ୟୋତକ । ଏହି ଦେବୀ ଶକ୍ତିର ପ୍ରଚାରର ଓ ନାରୀକୁ ଗୁରୁତ୍ୱ ଦେବାରେ ଭାରତୀୟ ତଥା ଉତ୍କଳୀୟ ପରଂପରାରେ ଓଷା ବ୍ରତର ଭୂମିକା ଗୁରୁତ୍ୱପୂର୍ଣ୍ଣ । ପ୍ରାଚୀନ କାଳରୁ ଲୋକ ମୁଖରେ ପ୍ରଚଳିତ ଦୈବୀଶକ୍ତି ତଥା ଦେବୀ ଶକ୍ତିର ପ୍ରଭାବରେ ସମାଜରେ କିଭଳି ବ୍ୟାପକ ପରିବର୍ତ୍ତନ ତଥା ବ୍ୟକ୍ତି ଜୀବନରେ ଦୁଃଖ ବିଷାଦ ଯନ୍ତ୍ରଣାର ଦୂର ହୋଇଥାଏ ତାହା ଓଡିଶାରେ ପ୍ରଚଳିତ ପ୍ରତ୍ୟେକ ଓଷା ତଥା ବ୍ରତ ପାଳନରେ ନିହିତ ଅଛି । ଏହା ସମାଜର ଅନନ୍ତ ବିଶ୍ୱାସ, ତେଣୁ ପ୍ରତ୍ୟେକଟି ଓଷା ବ୍ରତରେ ଏହି ଦୈବୀଶକ୍ତିର ପରାକାଷ୍ଠା କିପରି ନିହିତ ଅଛି ତଥା ଏହାର ପାଳନ ବିଧି ଓ ସୁଫଳ ପ୍ରାପ୍ତି ସମ୍ପର୍କରେ ପ୍ରବନ୍ଧରେ ଉପସ୍ଥାପିତ ହୋଇଅଛି । ପ୍ରବନ୍ଧଟି ଲୋକସାହିତ୍ୟକୁ ଭିତ୍ତିକରି ଲିଖିତ ।*



*ପ୍ରମୁଖ ଶବ୍ଦାବଳୀ (Keywords) - ମାତୃ ପୂଜା, ଶକ୍ତି ଉପାସନା, ପର୍ବପର୍ବାଣୀ, ଉଷାବ୍ରତ, ସଂସ୍କୃତି*


## I. ଉପକ୍ରମ:

ଭାଷା କହିଲେ କେବଳ ଯେ ମାନକ ଭାଷାକୁ ବୁଝାଏ ତାହା ନୁହେଁ । ଓଡ଼ିଆ ଭାଷାକୁ ଯଦି ଦୁଇଟି ଦିଗରୁ ବିଚାର କରାଯାଏ ତାହାହେଲେ ଏହା ଯଥା। ଆମର (ମାନକ ଭାଷା) କଥିତ ଭାଷା ଓ ଲିଖିତ ଓଡ଼ିଆ ଭାଷା - ଭାଷାର ଯେତେବେଳେ ବିକାଶକ୍ରମରେ ଆଲୋଚନା ଅନ୍ତର୍ଭୁକ୍ତ କରାଯାଏ, ସେତେବେଳେ ଏହାକୁ ପ୍ରାଚୀନ ଭାରତୀୟ ଆର୍ଯ୍ୟଭାଷା, ମଧ୍ୟ ଭାରତୀୟ ଆର୍ଯ୍ୟଭାଷାକୁ ବୈଦିକ ସଂସ୍କୃତ ଓ ଲୌକିକ ସଂସ୍କୃତରେ ଭାଗ କରି ମଧ୍ୟ-ଭାରତୀୟ ଆର୍ଯ୍ୟଭାଷାରେ ପାଲି, ପ୍ରାକୃତ ଓ ଅପଭ୍ରଂଶରେ ପହଞ୍ଚିଥାଉ । ସେହିଭଳି ଆଧୁନିକ ଭାରତୀୟ ଆର୍ଯ୍ୟଭାଷାରେ ଆମେ ବହୁ ବୈଦେଶିକ ଭୋାର ପ୍ରଭାବରେ ପ୍ରଭାବିତ ହୋଇଥାଉ । ଯେପରି ପର୍ତ୍ତୁଗୀଜ ଭାଷା, ଯାବିନିକ ଭାଷା ଓ ଇଂରାଜୀ ଭାଷାର ପ୍ରଭାବ । ଏଗୁଡ଼ିକର ପ୍ରଭାବ ଆମର କଥିତ ଭାଷାଠାରୁ ଆରମ୍ଭକରି ଲିଖିତ ଭାଷା ପର୍ଯ୍ୟନ୍ତ ବ୍ୟାପୃତ ।

ବର୍ତ୍ତମାନ ଏହାକୁ ନେଇ ପ୍ରଶ୍ନଆସେ । ଆମେ ଓଡ଼ିଆ ଭାଷାକୁ ବୁଝାଇବାବେଳେ ପିଲାଙ୍କୁ କହିଥାଉ ଓଡ଼ିଆ ଭାଷା ଉପରେ ଅଷ୍ଟ୍ରିକ୍ ଭାଷାର ପ୍ରଭାବ ଦ୍ରାବିଡ଼ ଭାଷାର ପ୍ରଭାବ, ଯାବନିକ ଓ ଇଂରାଜୀ ଇତ୍ୟାଦି ଭାଷାର ପ୍ରଭାବ । ଏହିଠାରେ ପ୍ରଭାବ ଭିତରେ କ'ଣ ଓଡ଼ିଆ ଭାଷା ବନ୍ଦୀ ହୋଇଯାଉ ନାହିଁ କି? କିନ୍ତୁ ଆହରଣ କ୍ଷମତା ଏହାକୁ ସମୃଦ୍ଧି ପଥରେ ନେଇ ଚାଲୁଛି ଯେତିକି, ପ୍ରାଚୀନ ବା ଆମର ପୁରୁଣା ଶବ୍ଦଠାରୁ ଆମକୁ ସେତିକି ମଧ୍ୟ ଦୂରେଇ ନେଉଛି ।

ଓଡ଼ିଆ ଭାଷାର ବ୍ୟବହାରକୁ ଦେଖାଗଲେ ପାଇବା ଆମର କଥିତ ଭାଷାର ବିଭିନ୍ନତା । ଆଞ୍ଚଳିକ କ୍ଷେତ୍ରରୁ ହେଉ ଏଗୁଡ଼ିକ ଯେ ଆମର ମୌଳିକତା ଏହାକୁ ଅସ୍ୱୀକାର କରାଯାଇନପାରେ । ଏ କ୍ଷେତ୍ରରେ କେତେଗୁଡ଼ିଏ କଥିତ ଭାଷାକୁ ନେଇ ଏହାର ଉଦାହରଣ ଦିଆଯାଇପାରେ । ପୂର୍ବ ଓଡ଼ିଶାର ଗାଁଗହଳିରେ ଏକ ପ୍ରକାର ଭାଷା ବ୍ୟବହାର ହେଉଥିବାର ଶୁଣାଯାଏ; ମାତ୍ର ସହରର ଶିକ୍ଷିତ ସମାଜ ଏହାଠାରୁ ଖୁବ୍ ଦୂରରେ ଯେପରି –

ଛଇ, ଛଟିକି, ଫେଣେ, ଆଖର, ଅଇଖିନା, ଏଇନେ, କିଅାାଁ, ଭାରି ପକେଇବା, ନିଘାରଖିବା, ଢିଆଳିଆ, ମାଣିଖୁଣ୍ଟ, ଛିଣ୍ଡାଳି (ଗାଳିଶବ୍ଦ), ଘୋଡ଼ାଗେଇ (ଗାଳିଶବ୍ଦ), ମାଣ୍ଟୁ, ସେଣି, ଛତି, ଜଳା, ଘିତି ଆଣିବା, ଘଟି ଇତ୍ୟାଦି । ଉଚ୍ଚାରଣ ଭିତ୍ତିରେ ମଧ୍ୟ ବାକ୍ୟ ଭିନ୍ନ ଭିନ୍ନ

ଦେଖାଯାଏ । ଏଥିରେ ବ୍ୟାକରଣିକ ନିୟମ ନ ଥାଏ କିନ୍ତୁ କହିବାର ସ୍ୱଚ୍ଛନ୍ଦତାରୁ ଜଣାଯାଏ ଏହାରି ଭିତରେ ବଞ୍ଚିଚ ରହିଛି ଆମର ଭାଷାର ଅଳଙ୍କରଣ ଓ ସୌନ୍ଦର୍ଯ୍ୟ । ଜାତି କ୍ଷେତ୍ରରେ ମଧ୍ୟ ଉଚ୍ଚାରଣର ଭିନ୍ନତା ପରିଲକ୍ଷିତ ହଉଏ । ବ୍ରାହ୍ମଣ ଜାତିଟି କହିବାହେଲେ କହିଥାଏ – ଚୁଁଡ଼ା, ଦହିଁ ଦେଇଦିଅ ।ଏଭଳି ନିକଟରେ ଏକ ଦିନ ବିଶ୍ୱବିଦ୍ୟାଳୟରୁ ଘରକୁ (୧) ୭୦ ଫେରୁଥିବାବେଳେ ଏକତମ ଦମ୍ପତି ଦେଖାହେଲା ବୟସ-୮୦ରୁ କମ୍ ହେବନି । ହଠାତ୍ ବୁଢ଼ାଟି ମୋତେ ପଚାରିଲା – "ସ୍ୱାମୀ ନଉଥଉନି । ମୁଁ ଉତ୍ତର ଦେଲି ନାଁ । ପେଲାଝେଲା ନଉଥଉନି -, ଉତ୍ତର ଦେଲି ନାଁ । -" କାରଣ ମୁଁ ବୁଝିଲି ସ୍ୱାମୀ କିମ୍ବା ପିଲାଛୁଆଙ୍କୁ ସାଙ୍ଗରେ ନେଇଛି କି ନାହିଁ ବୋଲି ପଚାରୁଛି । କିଛି ସମୟ କଥା ହେବା ପରେ ଏହାର ବାସ୍ତବ ଅର୍ଥ ଜାଣିଲି ସେ ମୋର ସ୍ୱାମୀ ଓ ପିଲାଛୁଆ ଅଛନ୍ତି କି ନାହଁ ପଚାରୁଛନ୍ତି । ପଚାରୁ ପଚାରୁ ଜାଣିଲି ସେ ଜାତିରେ ଡମ ଏବଂ ଗଞ୍ଜାମ ଭିତର ଅଞ୍ଚଳର ଲୋକ । ଏଭଳି ଭାଷାକୁ ଆମେ ଓଡ଼ିଆ ଭାଷା ନୁହେଁ ବୋଲି କ'ଣ ଅସ୍ୱୀକାର କରିପାରିବା? ସେହିପରି ନୟାଗଡ଼ରେ ଲୋକ କୁହନ୍ତି 'ଏଇଲେ ଅଇଲିଣି', ଯାଜପୁର ପିଲାଟି ଏହି କ୍ଷେତ୍ରରେ କହୁଛି 'ଅଇନା ଅଇଲି' ଇତ୍ୟାଦି । ସଂଗୃହୀତ ଶବ୍ଦକୁ ଦେଖିଲେ ଜଣାଯିବ ଓଡ଼ିଆ ଭାଷାର ଆଞ୍ଚଳିକ ମାନଟି ବେଶ ସମୃଦ୍ଧ ଓ ପ୍ରଭାବଶାଳୀ ।

ବାଲେଶ୍ୱରର କେତୋଟି ଶବ୍ଦ ଏଠାରେ ଆଲୋଚନା କରାଯାଇପାରେ ।

| ମାନକ ଭାଷା | ଆଞ୍ଚଳିକ ଭାଷା |
|---|---|
| ପ୍ରଶ୍ନସୂଚକ | |
| କଣ | କିସ |
| କେମିତି | କିନ୍ତିକା |
| କେଉଁଠିକୁ | କେଇଟିକି |
| କାହିଁକି | କେନେ |
| କେମିତି | କେରକମ |

| | |
|---|---|
| ଶବ୍ଦ ଦୃଷ୍ଟିରୁ | |
| ଲଙ୍କା | ଝାଳ |
| ବାଇଗଣ | ବାଗଣ (କଣ୍ଟାଫଳ) |
| ବିଲାତି ବାଇଗଣ | ବିଲାତାଲୁ (ଲଗାଫଳ) / ଟମାଟୁ |
| ଅପରାହ୍ନ | ବିକାଳ |
| ଦେଖ | ତକା |
| ବାରମ୍ବାର | ଏକ୍ସ |
| ଛୋଟଛୁଆ | କଟିଛୁଆ |
| ଖଟା | ଟକ |
| ସାଇତି | ସାବ୍ତି |
| ଗୋଡ଼ | ଗୁଡ଼ |
| କଖାରୁ | କଖୁରି / ବେଇତାଲୁ |
| ପୁଣିଥରେ | ଆବେଳେ |
| ପୁଣି | ଫେର୍ |
| ପଣସକଠା | ହିଞ୍ଚଡ଼ (କଞ୍ଚା)(୩) |
| ସରୁସେର | ଝୁରିଭଜା |
| ଘର | ହଟିକୁ |
| ଅତିଥି | ବନ୍ଧୁବାସ |

(ବନ୍ଧୁବାସ ଆସିଲେଣି ଖାଇବା ଜମିଯିମ)

| | |
|---|---|
| ଲେମ୍ବୁ | ନେମ୍ବୁ / ନେମ୍ବୁ |
| କଡ଼େଇ | କଡ଼ା |

(କଡ଼ାରେ ତରକାରି କର)

| | |
|---|---|
| ଝୁକୁଝୁକିଆ | ସନ୍ତସନ୍ତିଆ(୪) |
| ପାଖକୁ | କଟିକି |
| ଶୀଘ୍ର | ଖରଖର |

ସେହିପରି କ୍ରିୟାର 'ବି' ସ୍ଥାନରେ 'ମି' ହୁଏ ଯିବି ଯିମି -, ଲେଖିବି – ଲେଖିମି, ଦେଖିବି – ଦେଖିମି, ପଢ଼ିବି ପଢ଼ିମି ଇତ୍ୟାଦି - ଇତ୍ୟାଦି ହୋଇଥାଏ ।

ଅନୁଗୁଳର ଜିଲ୍ଲାର ଗ୍ରାମାଞ୍ଚଳରେକଥିତ ଭାଷାରେ ଭିନ୍ନତା (୫) ପରିଲକ୍ଷିତ ହୋଇଥାଏ । ଯେପରି–

| ମାନକ ଭାଷା | ଆଞ୍ଚଳିକ ଭାଷା |
|---|---|
| କ'ଣ | କିରା / କ' ଡ଼େ |
| କ'ଣ କରୁଛୁ? | କିରା କରୁଯୁ |
| ବାପଘର | ବାବୁଘର (ତୋର ବାବୁଘର କେଉଁଠି?) |
| ତା'ପରେ | ହେଠୁ |
| ଚାଲିବା | ରାଙ୍ଗିବା |
| ଭଲ | ନିକ (ଖୁବ୍ ନିକ ଜିନିଷ ହୋଇଛି ।) |
| ହାତରୁ ଖସିଯିବା | ପିଚିଣ୍ଡିଯିବା |
| ପାଦ ଖସିଯିବା | ସେନେଣ୍ଡିଯିବା |

ସମ୍ବୋଧନାରେ 'ହଲ'ର ବ୍ୟବହର କରାଯାଇଥାଏ । ଉଦାହରଣ ସ୍ୱରୂପହଲ କିରା କରୁଛୁ -:? ପଶ୍ଚିମ ଓଡ଼ିଶାରେ ଭିନ୍ନ ଭିନ୍ନ ସ୍ଥାନରେ ଭିନ୍ନ ଭିନ୍ନ ଭାଷା ଶୁଣିବାକୁ ମିଳେ । ବଲାଙ୍ଗୀର ଜିଲ୍ଲାର ଭାଷାସଂପର୍କରେ (୬) ଏଠାରେ କୁହାଯାଇପାରେ । ଯଥା-:

| ମାନକ ଭାଷା | କଥିତ ଭାଷା |
|---|---|
| ଲଙ୍କାମରିଚ | ମିର୍ଚା |
| ଘରଓଳେବି | ଘର ବନ୍ଧାମି |
| କଖାରୁ | ମାଖନ୍ |
| ମୁଣ୍ଡ କୁଣ୍ଡେଇବା | ମୁଡ୍ କୁରିହେବି/ମୁଡ୍ ରାପି ହେବି |
| ବିଲାତି ବାଇଗଣ | ପାତଲ ଘଣ୍ଟ |
| କ'ଣ ପାଇଁ | କାଏଁଥିର ଲାଗି |
| କୋଶଳା ଶାଗ | ଭାଜି ଶାଗ |
| କେମିତି | କେନ୍ତା |

| | |
|---|---|
| କାଞ୍ଚନ ଶାଗ | କୁଲେର ଶାଗ |
| କେଉଁଠି | କେନ୍ନେ |
| ହରଡ଼ ଡାଲି | ରାହାଡ୍ ଡାଏଲ୍ |
| ପୋକ | କିହାଁ |
| ବାମ | ଡେବ୍ରି |
| ଗୋବର | ଖର୍ସି |
| ଡାହାଣ | ଭୁକ୍ଲା |

ମରିଗଲ ଖରାପ ହୋଇଗଲେ

| | |
|---|---|
| କଇଁଆ | ତେତେଇ |
| ଗାମୁଛା | କରିଆ |
| ପିଉସୀ | ଝିି/ନାନା |
| ଝାଡୁ | ବାଡୁନ୍ |
| ମୋଟା | ଭୁସକା (ପୁରୁଷ) / ଭୁସ୍କି (ସ୍ତ୍ରୀ) |
| ଖଇ | ଲିଆ |
| ଫାଉଡ଼ା | ରଫା |
| ଝିଅ | ନିନି |
| ପୁଅ | ବାବୁ |

ଭବାନୀପାଟଣାରେ ପ୍ରଚଳିତ ଲୋକ କଥିତ ଭାଷାକୁ ଦେଖାଯାଉ । ବାକ୍ୟ ଦୃଷ୍ଟିରୁ ଏଠାରେ ମାନକ ଭାଷା ଓ କଥିତ ଭାଷାର ପାର୍ଥକ୍ୟ ଦେଖାଯାଇପାରେ ।

କ) ମାନକ ଭାଷା : ହାଟକୁ ଯିବି କି?
କଥିତ ଭାଷା : ହାଟକେ ଯିମି କେ?

ଖ) ମାନକ ଭାଷା : ନୂଆ ଚୁଡ଼ା ପୂଜା କରିବି କି?
କଥିତ ଭାଷା : ନୂଆ ଚିରା ପୂଜା କର୍ମି କେ?

ଗ) ମାନକ ଭାଷା : କାଲି ଆମ ଘରେ ପର୍ବ ଥିଲା ।
କଥିତ ଭାଷା : କାଏଲ ଆମର ଘରେ ପରବ୍ ଥିଲା ।

ଘ) ମାନକ ଭାଷା : ମୁଁ ଝିଅମାନଙ୍କ ସହ ବଜାରକୁ ଯାଇଥିଲି ।
କଥିତ ଭାଷା : ମୁଇଁ ଟୁକିଲ୍ମାନଙ୍କର ସାଙ୍ଗେ ହାଟକେ ଯିଇଥିଲି ।

ଙ) ମାନକ ଭାଷା : ମୋ ମା' ମୋର ବାପାଙ୍କ ପାଇଁ ଜାଉ ରାନ୍ଧୁଛେ ।
କଥିତ ଭାଷା : ମୋର ମା' ବାପାର ଲାଗି ଜୋକା ରାନ୍ଧୁଛେ ।

ଚ) ମାନକ ଭାଷା : ସନ୍ଧ୍ୟାରେ ମୋ ଭାଇ ଘରେ ପହଞ୍ଚିବେ ।
କଥିତ ଭାଷା : ବେଲବୁଡ଼ାକେ ମୋର ଦାଦା ଘର୍କେ ଖେଟ୍ବେ ।

ଛ) ମାନକ ଭାଷା : ତୁମେ ପାଣି ଆଣିବାକୁ ଯିବ?
କଥିତ ଭାଷା : ତୁମେ ପାଏନ୍ ଆନ୍ବାକେ ଯିବ?

ଜ) ମାନକ ଭାଷା : ତୁ ପଖାଳ ଖାଇବୁ ।
କଥିତ ଭାଷା : ତୁଇ ପେଜ୍ ଖେବୁ ।

ଏହି ଭାଷାଗୁଡ଼ିକ କ'ଣ ଆମର ନିଜର ନୁହେଁ ମାତ୍ର ଏସବୁକୁ ଆମେ ଆଲୋଚନା ନ ନେଇ ଆଞ୍ଚଳିକ ଭାଷା କହିଦେଉ ଏବଂ ପଶ୍ଚିମ ଓଡ଼ିଶାର ଭାଷା ହେଲେ ଏହାକୁ କହିଦେଉଛୁ ଛତିଶଗଡୀ ଭାଷାର ପ୍ରଭାବ । ଦକ୍ଷିଣ ଓଡ଼ିଶାର ଭାଷା ହେଲେ ଦ୍ରାବିଡ଼ ଭାଷାର ପ୍ରଭାବ ଏବଂ କେତେକ ମାତ୍ରାରେ ଦେଶଜ ଭାଷାର ପ୍ରଭାବ କହି ଛାଡ଼ି ଦେଉ ।

| ମାନକ ଭାଷା | କଥିତ ଭାଷା |
|---|---|
| ଏହା | ଇଟା |
| ସେହି | ସେଟା |
| ଯେଉଁ | ଯେନଥିଁ |
| କେହି | କିହେ |
| କେଉଁ | କେନ୍ଥ |
| ବୁଦ୍ଧିଆ ପିଲା | ବୁଦ୍ଧିଆଲ ପିଲା |
| ସୁନ୍ଦର ଫୁଲ | ସୁନର ଫୁଲ |
| ଅପେକ୍ଷା | ଟାଖିଆ |
| ସଦୃଶ | ବାଗିର |
| ମୁଣ୍ଡରେ | ମୁଣେ |
| ଆମ୍ବୁଲ | ତେତେଲ |
| ଲଣ୍ଠନ | ଲାଲଟିନ୍ |
| ଡିବି | ବଏଠା |
| ଛୋଟିମାଛ | ଝୁରା |
| ପିମ୍ପୁଡ଼ି | ଚାଁଟି |

କାମୁଡ଼ିବା ଜାବି ପକେଇବା

କ୍ରିୟା ବ୍ୟବହାରରେ ଯେଉଁ କେତେକ ଭିନ୍ନତା ପରିଲକ୍ଷିତ ହୁଏ ଯାଥ -: କରୁଛେଁ, କଲା, କରମି, ଯିମିତି, ଯଉଛେଁ, ଦେମି, ଖେମି, ନେମି, ଧର୍ମି, ରୁଛେଁ, କଲା, କରମି, ଯିମିତି, ଯଉଛେଁ, ଦେମି, ଖେମି, ନେମି, ଧର୍ମି, ପିଟ୍ମି । ଏଠାରେ ଗୋଟିଏ ଦୁଇଟି ବାକ୍ୟ ମଧ୍ୟ ମା' ଓ ପୁଅ ମଧ୍ୟରେ କଥୋପକଥନ ଢଙ୍ଗରେ ଦେଖାଯାଇପାରେ ।

ମାନକ ଭାଷା : ମା' ମୋତେ ଦିଅ ଏବେ ଖାଇବି
କଥିତ ଭାଷା : ମା ଗୋ ଭାତ ଦିରା ଦେତ ଖେମି ।
ମାନକ ଭାଷା : ଏବେ ଖାଇଥିଲୁ କାଇଁ ଦେବି?
କଥିତ ଭାଷା : ଇହାଛିନି ଖାଇଥିଲୁ ନାଁ କେଁ ଦେବେ?
ମାନକ ଭାଷା : କାହିଁକି ତରବର ହଉଛୁ?
କଥିତ ଭାଷା : କେଁ ହେଲା ଯେ ହରବରଉଛୁ?

ପ୍ରଶ୍ନସୂଚକ

| ମାନକ ଭାଷା | ଆଞ୍ଚଳିକ ଭାଷା |
|---|---|
| କ'ଣ | କିସ୍ |
| କାହିଁକି | କାଏଁ / କା |
| ତାଙ୍କୁ | ତାଙ୍କେ |
| ଆଙ୍କୁ | ଆଙ୍କେ |
| ଆପଣ | ଆଜ୍ଞା |
| ମୁଁ | ମୁଇ |
| ତୁ | ତୁଇ |

ସେହିଭଳି ଶବ୍ଦକ୍ଷେତ୍ରରେ ପରିଲକ୍ଷିତ ହୁଏ ଯଥା(ଜାମ) ପିଜୁଳି -:, ଛୁଇଁ (ମୁନିକା), ମୁଡୁକି (ଦାନ୍ତିକିଲି), କାକୁଡ଼ି (କଟିଆଳି), କାଜୁ (ଭାଲିଆ), ବରା (ଗାରି), ମାଟିଆଳୁ ଗୁ) ଛୁଇଁ .(ସାରୁ)ଆଁର(, ଓଲୁକୋବି (ଫଳକୋବି), କଖାରୁ (ବୋଇତାଳୁ), ଶିମ୍ବ (ଝଟା), ଝୁଡୁଙ୍ଗ (ଅଲଡ଼ି), କୁନ୍ଦୁରି (ତୋରଡ଼ା), ଗେଣ୍ଡୁଫୁଲ ଇତ୍ୟାଦି । (ମକମଲ୍ଲୀ)

ବାକ୍ୟ ଦୃଷ୍ଟିରୁ କେତେକ ବାକ୍ୟ ଏଠାରେ ଦେଖାଇବା ଉଚିତ୍ ମନେ କରାଯାଇପାରେ ।

ମାନକ ଭାଷା : ମୁଁ ଖାଇନାହିଁ ।

କଥିତ ଭାଷା : ମୁଇଁ ନାଇଁ ଖାଏ ।

ମାନକ ଭାଷା : ଘରଟା ଝାଡୁ କରିବେ ।

କଥିତ ଭାଷା : ଘରଟା ଝାଟେଇଦେ ।

ଏ ଦୃଷ୍ଟିରୁ ବିଚାରକୁ ନେଲେ ଦେଖାଯାଏ ଓଡ଼ିଆ ଭାଷାରେ ଆଞ୍ଚଳିକ ଭାଷାର ପଶ୍ଚିମାଞ୍ଚଳ, ଉତ୍ତରାଞ୍ଚଳ ଓ ଦକ୍ଷିଣାଞ୍ଚଳ କଲେ ମଧ୍ୟ ଆହୁରି ଅନେକ କଥିତ ଭାଷା ରହିଛି । କେଉଁଠାରେ ଜାତିଭିତ୍ତିକ କ୍ଷେତ୍ରରେ ଏହା ଭିନ୍ନତ କେଉଁଠାରେ ବୃତ୍ତିଭିତ୍ତିକ କ୍ଷେତ୍ରରେ ଭିନ୍ନ ହୋଇଥାଏ । ଆମ୍ଭିକ କୋଣରୁ ବିଚାର କଲେ ଏଗୁଡ଼ିକ ଓଡ଼ିଆ ଭାଷାର ମୁଖର ଭାଷା । ଏହି କ୍ଷେତ୍ର କାର୍ଯ୍ୟରୁ ଜଣାଯାଏ ଓଡ଼ିଆ ଭାଷାକୁ ପ୍ରଭାବିତ ଭାଷା କହି ରୁଦ୍ଧ କରି ଦିଆନଯାଇ ଏହାର ପ୍ରସାରିତ ସ୍ୱରୂପକୁ ଆକଳନ କରାଯାଉ ।

**ସହାୟକ ଗ୍ରନ୍ଥସୂଚୀ**

[୧.] ଦୁଃଖିଲତା ଖଟୁଆ, ବୟସ – ୭୪, ମାଲଣ୍ଡ, ଜଗସିଂହପୁର

[୨.] ନମିତା ଗିରି, ବୟସ – ୧୯/୨୦, ନିମାପୁର, ବାଲେଶ୍ୱର

[୩.] ହରେନ୍ଦ୍ର ଗାଁଣ, ବୟସ – ୧୯/୨୦, ବଡ଼ତାଳପଦା, ବାଲେଶ୍ୱର

[୪.] ଅରବିନ୍ଦ ଦାସ, ବୟସ – ୩୯/୪୦, ବାଲେଶ୍ୱର

[୫.] ଡଲି ବେହେରା, ବୟସ – ୧୯/୨୦, ଛେଣ୍ଡିପଦା, ନୂଆ ଗାଁ, ଅନୁଗୁଳ

[୬.] ଯଶୋବନ୍ତୀ ବେହେରା, ବୟସ – ୧୯/୨୦, ବଲାଙ୍ଗୀ

[୭]. ଖଙ୍ଗଚୂଳ, ବୟସ – ୧୯୨୦/, ଭବାନୀପାଟଣା

୮. ସଂଗ୍ରାମ ସାହୁ, ବୟସ – ୧୯୨୦/, ଅତାବିରା, ବରଗଡ଼

୯. ସିନୁ ବେହେରା, ଗଞ୍ଜାମ